# ବିଦେଶ ଗମନ

ବଦେଶୀ ଅନୁଚନ୍ତା, ଦଣ୍ଡନାଚ ଡ଼ୁଏଟ

ଓ

ବାରମାସୀ ଡ଼ୁଏଟ୍



ପ୍ରକାଶକ-ବାଣୀ ଭଣ୍ଡାର

ନୂତନ ବସଷ୍ଟାଣ୍ଡ, ବ୍ରହ୍ମପୁର-୪ (ଗଞ୍ଜାମ)

ମୂଲ୍ୟ - ଟ ୧-୫୦

# ବିଦେଶ ଗମନ

( କହିବୁ କଲା କୋଇଲ—ବୃତ୍ତେ )

ସ୍ତ୍ରୀ—ଆଜ ଯ ଅନା ଜୀବନ ଧନ ବିଦେଶ କରି । ଆଜ ।
ଆସୁ ଛି ଫଗୁଣ ଦେ ଳ ଖେଳିବା ହୋରି । ଆଜ ।

ପୁ—ଚିରଦିନ ହେଲା ଗୋଷ୍ଠୀ, ଛୁଟି ମୋ ଗଲଣି ପୂର
କର୍ମ ମା କଲ ଚାକିରି କରୁ ଗୋ ହୁକୁମ ଜ ରି
ମନା କର ନାହିଁ ମନା କନକ ଗୋଷ୍ଠୀ । ଆଜ ।

ସ୍ତ୍ରୀ—ଦେଖ ମୋ ନୂଆ ବୟସ, କିପରି ଯିବ ବିଦେଶ
ନୂଆ ନୂଆ କଥା ଭାବ, ସବୁ ମୋ ମନେ ପଡ଼ିବ
ରହିଜା ଆଜ ଦିନକ ପାଶେ ମୋହର ଆଜ ।

ପୁ—ମନା କର ନାହିଁ ଧନ ଗାଡ଼ି ବେଳ ଯିବ ଗଡ଼ି
ହରଷ ମନେ ବିଦାୟ କର ଆଗୋ ଜବାଧରି
ବସନାହିଁ ଯୋଗ ବର ମନକୁ ମାରି । ଆଜ ।

ସ୍ତ୍ରୀ—ମାନ ଅବେ କଥାମାନ କେ ବୁଝିବ ମୋ ବେଦନା
ଏକାକରି ଗଲେ ଚାଲି ମୋର ଦେହ ହେବ ଚୂନା
ଛାଡ଼ିଦିଅ ବନ୍ଧୁ ହେ ବଙ୍ଗଳା ଚାକରି । ଆଜ

ପୁ—ନ ଗଲେ ନ ଚଳେ ସଖୀ, ମହରଗ ଯୁଗ ଏହି
ଦିନକୁ ଦିନ ପ୍ରବଳ ବଢ଼ି ଚାଲୁଅଛି ଦର
କି ଖ ଇ ବଞ୍ଚିବା ପ୍ରାଣରତନ ଗୋଷ୍ଠୀ । ଆଜ

ସ୍ତ୍ରୀ—ତୁମେ ଯେବେ ଯିବ ଧନ, ଯିବି ତୁମ ସଙ୍ଗେ ଜାଣ
ମନ ଯାହା ହେଲେ ବେଳେ ଯୋଗ ଲ ଦେବ ପାଶରେ
ବିରହ ବେଦନା ଦୁଃଖ ଯିବଟି ଚାଲି । ଆଜ

ପୁ—କହନା ସେ କଥା ଅ ଜ, ଆଜ କରୁ ଦିନ ଯାଇ
ଭୁଲିବୁ ମୋ ସଙ୍ଗେ ତୁମ୍ଭ ବଙ୍ଗଳା ଦେଶରେ ସଖୀ
କଷ୍ଟ ଦେଇ ଧ ଉଅଛି ଆସିବି ଫେରି । ଆଜ

ସ୍ତ୍ରୀ—ଘର ଦ୍ୱାରରେ ଘର କା ପାଶେ ଛାଡ଼ି ନାଗର
ରହିବ ବିଦେଶ ଯାଇ କେ ବୁଝିବ ମୋ ଖବର
ଚାହିଁ ରହିଥିବି ସଞ୍ଜ ଜାଗର ଜ ଳି । ଆଜ

ପୁ—ପଠାଇ ଥିବି ଖବର, ବର୍ଷ ଥି ଡାକଘର
ଝାଳନାହିଁ ଚନ୍ଦ୍ରମୁହିଁ ଆସିବି ଦୁର୍ଗାପୂଜାରେ

ମୋ ଶୁଭ ମନାସୁ ଥିବୁ ଦୁର୍ଗା ସୁନ୍ଦରି । ଆଜ
ସ୍ତ୍ରୀ—ହେବ ପରା ବନ୍ଧୁ ରଜ, କା ଲାଗି ମୁଁ ହେବ ସଜ
ଝୁରିଝୁରି ଯିବଯରି କା ସଙ୍ଗେ ଖେଳିବ ଦୋଳ
ଗୁଣ ଦେଇ ମନ ମୋର କରିବ ଶ୍ବେର । ଆଜ
ପୁ—ପଠାଇ ଦେବ ରଜର ବେସ୍ତ୍ରାଇଟ ସୁଇଟର
ଶାଢ଼ୀ ସାଇଆ ବ୍ଲାଉଜ କା ସଙ୍ଗେ ମଞ୍ଜି ଅତର
ଅଛୁ ସାନ ଭାଇ ଘରେ ସେ ବନମାଳ । ଆଜ

—୦—

## —ଓଡ଼ିଶୀ ସଙ୍ଗୀତ—

ଗୁଡ଼ ଶ୍ୟାମ......ଟାଣ ନ ପଣନ୍ତ କାନ—ଟାଣନା
ବାଟ ଜଗି ଏତେ ନାଟ ତୁ କରନା
ଡେରି ହେଲା, ବେଳ ଯିବ ଯମୁନା [ଘୋଷା]
ଯେତେ କଲ ମନା ନ ମାନୁଚରେ ସିନା
ଜାଣିଛୁ ମୁଁ ବୃଷଭାନୁର ଜେମା
ଆନ ନାରୀ ପ୍ରାୟେ ନ ମଣରେ ମୋତେ
କହୁଛୁ ଆଜ ତୁ ପଟି କରନା ।୧।
ସବୁ ଜନେ ତୋର, ନ ଗଲ ରେ ଶ୍ବେର
ପରି ଏକ ଖତ କାଳିଆ କାହ୍ନା
ବସି କଦମ୍ବମୂଳେ ଯମୁନାର କୂଳେ
ଗୁଡ଼ିକ ତୋହରି ଉର ଲାଗେନା ।୨।
ନ କର ଜଞ୍ଜାଳ ଆହେ ନନ୍ଦବାଳ
ଶାଶୁ ସପତଣୀ ନନ୍ଦେ ମନା
ଏ ବ୍ରଜ ବଜାରେ ମୋହରି ନାଆରେ
କଲଙ୍କ ପଡ଼ିବ ବୋଲିବେ ସିନା ।୩।
ମୁହିଁ ଖରା ତୋର ମାଇଁରେ କାହ୍ନିଆ
କଣ୍ଡିଭୁକ ଥିଙ୍କ କେତେଟା ବାହନା
ପର ଭୁଆସୁଣି ଖନ୍ତ ନାହିଁ ପୁଣ
ଧରୁଛି ତୋ କର ବଂଶୀ ବଦନା । ୪ ।

ତୋ ଲାଗି ଯମୁନା ହେବ ମୋତେ ମନା
ନ ଆସିବ ଶ୍ୟାମ ଏଣିକି ସିନା
ନ୍ଦେ ବନମାଳି ଶ୍ରୀରାଧା କିଶୋର
କହନ୍ତି ଫେରଯା କାଳିଆ ସୁନା ।୫।

—o—

— ଓଡ଼ଶୀ —

କି ଯୋଗେ ଗଲି ଆଜ ପାଣିକି......ହା ଏମିତି
ଏ କଥା ହେବ ଥିଲି ଜାଣିକି । ପଦ ।
ପାଣିକି ବଢ଼ାନ୍ତେ ପାଣି, ଦେଖିଲି ତ୍ରିଭଙ୍ଗି ଠାଣି
କାମବାଣ ବିନ୍ଧିଦେଲା ଟାଣିକି, ଟାଣିକି ହା ଏମିତି
ସଙ୍ଗେଥାନ୍ତି କେତେ ନାରୀ, ଲାଜେ ମୁହିଁ ଟଳେ ସରି
ଲେଉଟି ଆସିଲି ପାଦ ଗଣିକି ହା ଏମିତି
ଝିଙ୍କି ମୋ ଘଟେ କାନ, କି କହିବି ରେ ସଜନୀ
ତା କଥା ଶୁଣି ମୁଁ ହେଲି ପାଣିକି, ପାଣିକି ହା ଏମିତି
ଯେତେ ମୁହିଁ କଲି ମନା, ନ ମାନିଲେ ଶ୍ୟାମ ମନା
ସୁଘଟ ନଗର କାହ୍ନା ଖଣ୍ଡିକି ହା ଏମିତି
ହସ୍ତରେ ଧରିଲେ ଉଡ଼ି, ଚେତା ମୋର ଗଲା ବୁଡ଼ି
କି କହିବ ଯାହା ଦେଲା ଟେଣିକି, ଟେଣିକି —ହା ଏମିତି

—o—

ବଟଦେଶୀ ଅନୁଚିନ୍ତା

ଯ ଶୋଷ୍ଣ ଦେଲକ ବନ୍ଧୁ ଭାବ ପ୍ରେମଟି
ଯଃଶୋର କାହିଁକି । ପଦ ।

ଜାତୀ ହୋଇଲେ କୁସୁମ    ରହିବକି ନୁଆଁ ପ୍ରେମ
ବନର ମାଳତୀ ପରି ଝଡ଼ି ଯିବଟି
ସ୍ୱର୍ଗି ରଖିଥିଲି ଯାକ    ଅତର ମିଶା ଚନ୍ଦନ
ସାଜିଥିଲି ଭୁଜଲତା କାହା ପାଇଁଟି ।
ମୋର ଏ ପୀରତି ଲତା    କାହା ପ୍ରେମେ ସୁଶୋଭିତା
ମାରି ଶରେ ମରମକୁ ଜାଳିଦେବକି
ଆସିବେ ବୋଲିଣ କହି    ପଡ଼ିଲେ କା ଫାନ୍ଦେ ଯାଇ

## ଶୟନ ଭୋଜନେ ଭୁଲ ହେଲେ ବାଇକ ॥

ଫିମା ଏ ପୁଷ୍ପ ଯଉବନ                    ନ ସାଚ କସ୍ତୁରୀ ପୁଣ
ଘନ୍ତୁ ଘନ୍ତୁ ଚନ୍ଦ୍ର ଷୀଣ ହେଉଛି ।
କାଲି ଅର୍ଦ୍ଧ ରଜନୀରେ                    ସ୍ୱପନ ଦେଖିଲି ବାରେ
ସବୁ ଚୁମ୍ବ ଦେଇ ମତେ କୋଳେ ନେଲେକ
ନଦ୍ରାରୁ ଉଠି ବସିଲି                    ଘରେ ନାହାନ୍ତି ଦେଖିଲି
ମଦନ କୁସୁମ ଶରେ ମାଉ ଦେଲା କ ।
କର୍ମ ମୋର କେତେ ମନ୍ଦ                    ମଦ ଜଣି ଦେଲୁ ଛନ୍ଦ
ଏ ଯୁବା ବୟସ ବୃଥା ହୋଇଯିବ କ ।
ହାସୁରେ ମନ ବଧାଣା                    ଦେଲୁ କେତେ କାମ ଚନ୍ତା
ଭ୍ରମର ଜାଣ ଅଷ୍ଟ୍ରାଦ କେବେ ନାହିଁଟି !
ହେ ପ୍ରଭୁ ମୁରଲି ଧର                    ଯାବେ କୋଟି ନମସ୍କାର
ଭାଗବତ ପାଣିଗ୍ରାହି ଗୀତେ କହେଟି ।

—o—

## ବାରମାସୀ ଦଣ୍ଡନାଚ ଡ଼ୁଏଟ୍

ବନ୍ଦେ ପାର୍ବଣୀ ଶଙ୍କର
                    ବନ୍ଦେ ପାର୍ବଣୀ ଶଙ୍କର
ବନ୍ଦେ ପାର୍ବଣୀ ଶଙ୍କର
            ବନ୍ଦନା କରୁଛି
ଗଣପତି ବାକ୍ୟ ଦେଖା ସୁନର ହେ
                    ଦଣ୍ଡବତରୁ ଜୁହାର । ୧ ।
ପ୍ରଥମେ ବନ୍ଦିଲି ଗଣ ଈଶ୍ୱର
                    ଦିଶାଯେ ବନ୍ଦିଲି କରୁଣା କର
ଭୂଶାୟେ ଅନନ୍ତ ନାଗ ଯମ୍ବର
                    ବର୍ଣ୍ଣି ଗତେଡ ଚର୍ଚ୍ଚିକାଙ୍କ
ଖୋରଧା ଗଡ଼ରେ ବନ୍ଦେ କରଅଛ
                    ନାମ ଅଟେ କରୁଣାଇ ।୨।
ମାଆ ମାଙ୍ଗଳୀଙ୍କୁ କରୁଛୁ ଅଳ

ଦଣ୍ଡକଚଳକୁ ଦେବ ହୁଳହୁଳି
ହୁଳହୁଳି ଉଚ୍ଚ ସ୍ୱରରେ ଦେବ
ମନୋବାଞ୍ଛା ତବ ପୂର୍ଣ୍ଣ ହୋଇବ
ତେବେ ମୋ ମନ ହୋଇବ ଥଣ୍ଡା
ଭୂମ ନାମେ ନନ୍ତ ଦକ୍ଷିଣ କାଳୀଙ୍କ
ଚଢ଼ାଉ ଥିବ ମୁଁ ଧୁଣ୍ଡା । ୩ ।
ଆଷାଢ଼ରେ ମେଘ ଗର୍ଜ୍ଜି ଗୁଡ଼ୁଛି
ଛେଞ୍ଚୁରୁ ପଡ଼ର ବୃଷ୍ଟି ଧାରଇ ।
ଗାଡ଼ିଆରେ ଫୁଟେ କଇଁ
ଭ୍ରମରା ଚଳନ୍ତି ରସିକ ନାଗର
ଜାଳିଦେଲୁ ମୋତେ ବାଇ
ମନୁବାଘା, ମନୁଆରେ ଜାଳିଦେଲୁ ମୋତେ ବାଇ । ୪ ।
ଶ୍ରାବଣ ମାସରେ ବୃଷ୍ଟି ବରଷା
ଲାଗିଥିଲା ଧାନ ରୁଆ ବେଳଟା
ପଡ଼ିଥିଲା ଇନ୍ଦ୍ରଧନୁ । କଆବୁଦା ମୂଳେ
ମନ ଦଆନ୍ଥା ଛ ଶୋଇ ଦେଲୁକ ମନୁ
ଶାରିବୋଉ ପିଠେଇ ନେ ଚାଲୋଇ ଦେଲୁକ ମନୁ
ଭାଦ୍ରବ ମାସରେ ଖେଳୁ ଦୁରୁକୁଣୀ
ଚୋରି ଭୂଆସୁଣୀ ଓଷେଇଁକୁଣୀ ।
ଖଇ ଡାଲି ଠାବେ । ମଙ୍ଗଳା କୋଠିରେ
ଆଖି ଠାରିଠାରି ପଶୋଇ ଦେଲୁକ ଏବେ
ଜଗାବାପା ଜଗିଆରେ ।
ଘଟେଶ ରି ଦେଲୁକ ଏବେ । ୬ ।
ଅଶ୍ୱିନ ମାସରେ ପୋଦା ଚରଙ୍କ
କଇଁଥ ଫେଳରେ ଫେଳ ଖରବ
ଝଙ୍କାର ଗଛରେ ଚଗ୍ର
ମଙ୍ଗଳା କୋଠିରେ ଚରଣ ଧରିଣ ମୁଣ୍ଡ ଛୁଇଁଥିଲୁ ପଗ
ଶଶୀ ବୋଉ ସୁକୁଟି ମୁହନଇ ନେଲା

ମୁଣ୍ଡ ଝୁଇଁଥିଲୁ ପଗ । ୭ ।
କାର୍ତ୍ତିକ ମାସରେ ହବିଷ ବ୍ରତ
କେତେ କରିଥିଲୁ ସତ୍ୱ ସଙ୍ଗାତ
ସେବିଥିଲୁ ହରିଚଣ୍ଡି । ଓଠ ଧରି ଗଣ୍ଡେ
ତୁ ମାବେ ଜଥିଲୁ ହରି ଘାଉଥିଲି ଦଣ୍ଡି ।
ହରିବାସା ବଳଆ ରେ ହଳସ ଉଥିଲି ଦଣ୍ଡି । ୮ ।
ମାର୍ଗଶୀର ମାସେ ଚଉଜ ପାଳି
ଶ୍ୱେତ ବାନ୍ଧିଥିଲୁ କାଞ୍ଚନ ଥାଳି ।
କଅଁଳ କସି କାଇଞ୍ଜ । ଅ ରୁଣା ଦେବାରୁ
ମନ ଭଙ୍ଗି ଗଲି ଭୁଲିଗଲୁ ମୁହଁ ମୋହି
ଆଶା ଦୋଉ ନିଆଶା କଲୁ ।
ଭୁଲିଗଲୁ ମୁହଁ ମୋତେ । ୯ ।
ଶିଶିର ପବନ ପୁଷ ମାସରେ
ଅଜା ବସିଥିଲି ଆଞ୍ଜି ପାଖରେ ଧାନ ଗଦା ମୂଳେ ବସି
କଅଁଳ ଖରାରେ ଖଞ୍ଜୁଥିଲି
କାନ ଠାଣି ଦେଲୁ ଆସି
ମାଙ୍କବାପା ବଧୂଆରେ କାନ ଠାଣି ଦେଲୁ ଆସି । ୧୦ ।
ମାଘୁଆଣୀ ପାଣି ବରଷି ଗଲା
ନୂଆ ବୋଉ ଘର ପରଶୁ ଥିଲା ।
ଅକାଳେ କୁହୁଡ଼ି ଖାସ । ଶେଯ ତଳେ
ଶୋଇ ରସିକ ନାଗର ଘୁଣ୍ଟକୁ ଉଠିଲା ବସ
ରେଳ ବୋଉ ସେବଣ କଲେ ।
ଘୁଣ୍ଟକୁ ଉଠିଲା ବସ । ୧୧ ।
ଫଗୁଣ ମାସରେ ଆମ୍ବ ବଉଳ
ବାଆ ଫୁଲୁ ଫୁଲୁ ଘୁଞ୍ଚ କୁହୁଳ
ଯଉବନ ଛନ ଛନ । ରଙ୍ଗ ଗଢ଼ି ଗରି
ଅଙ୍ଗ ଦେଖି ତୋର ଜଳ ପୋଡ଼ିଯାଏ ମନ
ସାଧୁ ବାପା ଗଧୁଆରେ । ଜଳ ପୋଡ଼ିଯାଏ ମନ । ୧୨ ।

ଚଇଚ ମାସରେ ଚଇତ ଘୋଡ଼ା

ଚେର ବନେ ହୁଏ ଝାମୁ ଯାତଙ୍କ

ବେଳ ଗୁଣ୍ଡ ଦେଖା ଦେଖି ।

ଚଡ଼କ ପମ୍ପା ମୋ ଚଭୁର ଭଙ୍ଗୀରେ ମାରଦେଲ ସରୁ ଆଖି ।

ଶାନ୍ତିବୋଜ ସତ୍ରେଇ ମୋ ମାରିଦେଲୁ ସରୁଆଖି । ୧୩ ।

ବଇଶାଖ ମାସ ହେଙ୍କଳା ଖରା ।

ମୁଣ୍ଡରେ ପଣଚ କାଖରେ ଗରା ।

ମୁହିଁ ଯାଇଥିଲି ଶୁଖି

ବାଅଁ ବଉଳନ କାଳରେ ନାଗର

ପଣଚ ଦେଲୁ ମୋ ଝିର୍କି ।

ସୁଲୁ କାଯା ସୁଭଆ ରେ ପଣତ ଦେଲୁ ମୋ ଝିର୍କି । ୧୪ ।

ଜ୍ୟେଷ୍ଠ ପୂର୍ଣ୍ଣିମାରେ ନେମାଲୁ ଯାତ,

ଭିଡ଼ ଗହଳରେ ଧରିଲୁ ହାତ

ଓଠରେ ମାଇଲୁ ପିଟି

ସ୍ୱାଙ୍ଗ ସାଥି ଗୁଡ଼ ମୋ ଛଡ଼ ଧଇଲୁ

ନଛିବ କେ ଭେଟାଭେଟି । ୧୫ ।

ଦଣ୍ଡକୁ ଯେ ଜନ ହେଳା କରିବ ।

କାଠ ବେଙ୍ଗ ହୋଇ ଜନମ ହେବ ।

ହୋଇବ ବଧିରା ସେ ଅଣ୍ଟୁ କୁଡ଼ ।

ଚାର ଆଖି ନାକ କାନ ଯିବଟି ଛିଣ୍ଡ଼ ।

ଯେବେ ଆଜ ସୁଲକ୍ଷା ହୋଇବ

ମାଆ ମାଇକୀଏ ଚମ ଝିଅ ମୋଇଁ ବାଣ

ଏ ବନ୍ଧ ଖଣ୍ଡି ଜ ନେବ । ୧୬ ।

—୦—

ବ୍ରହ୍ମପୁର ଶାନ୍ତି ପ୍ରେସ୍‌ରେ ମୁଦ୍ରିତ ।